# ତବ ନକୁଟର ଶୋଭା

ମୃଗର ତରଳ ନେତ୍ରେ କ୍ଷୁଦ୍ର ଏ ମୋତି ବିନ୍ଦୁ
ତୁମରି ନକୁଟପୁଷ୍ଟେ ସୌମ୍ୟତାବୃଦ୍ଧି ଆଶେ ।
ଅମିତ ଗଗନ ଯାତ୍ରା ତେଜି ତାବୀଶ ଗର୍ଭେ
ସହିଛି କଷଣ ବକ୍ଷଚ୍ଛେଦନେ ପାଂସୁଘାତେ ॥

**ନକୁଟ**= ନାସା; **ସୌମ୍ୟତା**= ସୌନ୍ଦର୍ଯ୍ୟ; **ଅମିତ**= ବିଶାଳ; **ବାରୀଶ**= ସମୁଦ୍ର; **ପାଂସୁ**= ବାଲି!

ଛନ୍ଦ: ମାଳିନୀ (ନନମୟୟ)
111/111/22•2/122/122
by **L. Kabi 202501072353**

## ନକ୍ଷତ୍ରମାଳା

ଆକାଶ ସୌଧେ ଶଶିପେଟିକାରେ
ଅଶ୍ୱେତ ଛାୟାଶିବଲିଙ୍ଗ ପାଶେ ।
ସିଦ୍ଧାଙ୍ଗନା ରାତ୍ରି କଲାଣି ପୂଜା
ନକ୍ଷତ୍ରରତ୍ନେ କରି ପୀଠସଜ୍ଜା ॥

**ପେଟିକା**= ପେଡି; **ପୀଠ**= ପୂଜାସ୍ଥଳୀ;
**ଅଶ୍ୱେତ**= କଳା;

ଛନ୍ଦ: **ଇନ୍ଦ୍ରବଜ୍ରା** (ତୌ ଜଗୌ ଗଃ)
221/221/121+22
by **LKabi 202502072323**

## ଭିକ୍ଷାପ୍ରବୃତ୍ତି

ପ୍ରାଚୀନ କାଳୁ କହି ଭିକ୍ଷୁକ ଦେବତୁଲ୍ୟ
ଭିକ୍ଷାକୁ ପୁଣ୍ୟ ଭିତରେ କଲ ସର୍ବମାନ୍ୟ ।
ଏ ଦେଶ ଭିକ୍ଷୁ କଲ ଦୁର୍ବଚନ ପ୍ରଭାବେ
ଏବେ ନ କାନ୍ଦି ସହି ଯାଅ କପାଳ ଲେଖା ॥

ଛନ୍ଦ: **ବସନ୍ତତିଳକା** (ତଭଜା ଜଗୌ ଗଃ)
221/211/121/121+22

**by LKabi 202501072207**

.

## ତାମ୍ରାକ୍ଷ ପ୍ରତି

ଆକାରେ ନୁହଁ ରମ୍ୟ କୌଣସି ମତେ ତାମ୍ରାକ୍ଷ ଭୂମଣ୍ଡଳେ
ଚଞ୍ଚୂ ତୀର ପରାୟ ତୀକ୍ଷ୍ଣ ପୁରତଃ ରାବେ ଭରା ରୂକ୍ଷତା ।
ଆହାରୀ ପୁଣି ନର୍ଦ୍ଦମା ମଳ ସଦା ସଂବାସ ଶାଖା ପରେ
କିମ୍ପାଁ କେ ତୁମଲାଗି ବୋଳି ମମତା ପାଳେ ସୁନା ପଞ୍ଜରେ ॥

**ଆକାର**= ଚେହେରା; **ତାମ୍ରାକ୍ଷ**= କାଉ; **ପୁରତଃ**= ଆଗରେ; **ସଂବାସ**= ଘର; **ଶାଖା**= ଡାଳ;
ଛନ୍ଦ: ଶାର୍ଦ୍ଦୂଳ ବିକ୍ରୀଡିତମ୍
(ସୂର୍ଯ୍ୟାଶ୍ୱୈର୍ମସଜସ୍ତତାଃ ସଗୁରବଃ)
ମସ ଜ ସ ତ ତ +ଗୁ
222/1121/121/112••221/221+2
by **L Kabi 202501071307**

### ମନ୍ତବ୍ୟ:

**22 2/11 2/1 21/ 11 2/ 22 1/ 22 1/ 2**
**ନିଶ୍ଚେ କା/ଉର ଦୁଃ/ଖ ହେବ/ ପଢି ଏ ଶାର୍ଦ୍ଦୂଳ/ ବିକ୍ରୀଡି/ତମ୍ ।**

## ପଙ୍କିଳ ନୀରଧାରା

ଆକାଶୁ ପର୍ବତ ପରେ ପଡି ନିମ୍ନଭାଗେ
ଯାତ୍ରା ପରେ ବହୁତ ଦୂର ନଦୀତରଙ୍ଗେ ।
ମାର୍ଗେ ସମସ୍ତ ମଳ ବୋଳି ଶରୀର ସାରା
ଅନ୍ୟେ କି ଶୁଦ୍ଧ କରି ପାରିବ ନୀର ଧାରା ॥

ଛନ୍ଦ: **ବସନ୍ତତିଳକା** (ତଭଜା ଜଗୌ ଗଃ)
221/211/121/121+22
by **L Kabi 202501071007**

## ଲଜ୍ଜାବିମୁକ୍ତଲଳନା

ଊର୍ଦ୍ଧ୍ୱେ ପ୍ରଚଣ୍ଡ ସହସା ଶୁଣି ବଜ୍ରନାଦ
ଦେଖି ପ୍ରବାତ ଚଳନେ ହତ ବୃକ୍ଷଶାଖା ।
ତ୍ରାସେ ବିମୁଗ୍ଧଲଳନା ତେଜି ଲାଜଲଜ୍ଜା
ଆଶ୍ଳେଷି ଶକ୍ତ ରହିଲା ପ୍ରିୟ କାନ୍ତ ବକ୍ଷେ ॥

ଛନ୍ଦ: **ବସନ୍ତତିଳକା** - ତଭଜା ଜଗୌ ଗଃ
221/211/121/121+22
by **L. Kabi 202501062233**

## ସଞ୍ଜନା ସଞ୍ଜକାଳେ

ସୃଜିଲ ସଜ କି ଜନ୍ୟେ ସଞ୍ଜନା ସଞ୍ଜକାଳେ
ରଚିବ କି ରସ ରଙ୍ଗେ ଅଙ୍ଗନା ସଙ୍ଗଶାଳେ ।
ରମିବ ରିଧମ ରାଗେ ଶର୍ବରେ ସ୍ୱର୍ଗରାଜ୍ୟେ
ରଚିବ ରୁଚିର ଚର୍ଯ୍ୟା ମଞ୍ଜୁଳା ମଲ୍ଲିମାଳେ ॥ 1

*ଜନ୍ୟ= occasion; ସଞ୍ଜନା= well born;*
*ରଙ୍ଗ= love; ସଙ୍ଗଶାଳା= hall of union;*
*ରିଧମ= love; ଶର୍ବରୀ= darkness; ଚର୍ଯ୍ୟା=*
*activity, conduct; ମଞ୍ଜୁଳା= lovely;*

ଯିବି କି ତୁମରି ସଙ୍ଗେ     ଦେଖି କେ ଭାଗ୍ୟଶାଳୀ
ଅଛି ବି ଧରଣି ବକ୍ଷେ     ଯା କଥା ଭାଳି ଭାଳି ।
ତୁମ ସରିକି ସୁନନ୍ଦା     ନନ୍ଦିନୀ ମନ୍ଦ ପାଦେ
ଗମୁଛି ମଳିନ ମାର୍ଗେ     ନିର୍ଜନେ ନିର୍ବିବାଦେ ॥ 2

*ସୁନନ୍ଦା= ସୁଲଳିତା; ନନ୍ଦିନୀ= କନ୍ୟା;*

ଛନ୍ଦ:   ମାଳିନୀ (ନନମୟୟ)
111/111/22•2/122/122
by   L Kabi   202501061221

## ଦେବଦେବୀ

**ଅଗଣିତ ବିବୁଧାତ୍ମା     ଶକ୍ତି ସାମର୍ଥ୍ୟଗାଥା**
**ପଢି ସକଳ ପୁରାଣେ     ସ୍ପଷ୍ଟ ତା ବୋଧ ଅନ୍ତେ ।**
**ମନ କହୁଛି ଦେବେ     ଥାନ୍ତୁ ସର୍ବପ୍ରସାଦେ**
**ମୁଁ କରିବି ନିତି ପୂଜା     ବିଶ୍ୱକର୍ତ୍ତା ସମକ୍ଷେ ॥ 1**

**ବିବୁଧ= ଦେବ; ପ୍ରସାଦ= ଆନନ୍ଦ;**

**ଛନ୍ଦ: ମାଳିନୀ   (ନନମୟୟ)**
**111/111/22•2/122/122**
**LKabi 202501061111**

===================
08 -vv 8/**84**
ସମଛନ୍ଦ: **ଶଲ୍ଲକପ୍ଲୁତ**
ଗଣ: ସଗଣ ରଗଣ + ଲଗୁ
ବର୍ଣ୍ଣ: **112/212 + 12 (8)**
===================

# ପ୍ରେୟସୀ

ଅଧରେ ଭଙ୍ଗିମା ଭରା ନୟନେ କୁଞ୍ଚନ ଦ୍ୱରା ।
ରଦନେ ଚାପି ଅଙ୍ଗୁଳି ଲଳନା ପ୍ରେମଜର୍ଜ୍ଜରା ॥1

**ରଦନ= ଦାନ୍ତ;**

ବିଜନେ ସେ ଅଧୋମୁଖେ ପ୍ରଚରେ ଆପଣା ବୁକେ
ରହିତେ ଦେଖି ଚୌଦିଗେ କ୍ରମିତା ସଙ୍ଗମୋତ୍ସୁକେ ॥ 2

**ପ୍ରଚର= ରାସ୍ତା: ରହିତ= ଗୋପନ; କ୍ରମିତ= ଗତିଶୀଳ; ସଙ୍ଗମ= ମିଳନ; ଉତ୍ସୁକ= କାମନା;**

ବହୁ ଆଶା ଥିଲା ମନେ ସକଳେ ମାନିବେ କଥା ।
ବୁଝିଲେ ନାହିଁ କେ ଜଣେ ଅତି ହେଲା ମନବ୍ୟଥା ॥ 3

ଧରିଲା ଦମ୍ଭ ବୋଲି ସେ ମନ ହେଲା ଦିଆ ନିଆ
ପ୍ରିୟ ପାଶେ କି ସାହସେ ଲୁଚି ସେ ସାଜିଛି ପ୍ରିୟା ॥ 4

**Kabi 202501051016**

## ଚାଟୁପ୍ରଭାବ

ଦୁର୍ଦ୍ଧର୍ଷ ଭୂପ ନିଜ ନିଷ୍ଠୁରକର୍ମଶଂସା
ଯେବେ ଶୁଣେ ଖୁସି ମନେ ଶିର ଦୋହଲାଏ ।
ଏହା ବିଚାରି କରିଲା ପ୍ରଭୁ ସୃଷ୍ଟିକର୍ତ୍ତା
ପୃଥ୍ୱୀର ଧାରକ ଭୁଜଙ୍ଗଙ୍କୁ କର୍ଣ୍ଣହୀନ ॥

**ଭୂପ**= ରଜା; **ଶଂସା**= ପ୍ରଶଂସା; **ଭୁଜଙ୍ଗ**= ସାପ;

ଛନ୍ଦ:   **ବସନ୍ତତିଳକା** (ତଭଜା ଜଗୌ ଗଃ)
**221  211   121   121 + 22**
**L Kabi    202501021750**

.

## କାମନା

କାନେ ବାଜେ ରବିତନୟର ଗ୍ରାମରୁ କ୍ରନ୍ଦନାଦ
ଧୀରେ ଧୀରେ ଚିପୁଅଛି ଗଳା ମୃତ୍ୟୁ ତା ଶକ୍ତ ଫାଶେ ।
ପଞ୍ଚପ୍ରାଣଙ୍କ ତନୁରୁ ଖରେ ମିତ୍ରତା ହ୍ରାସ ପାଏ
ତେବେ ସୁଦ୍ଧା ବିଷୟ ପଛରେ ଧାବମାନ୍ ଏହି ଚିତ୍ତ ॥

**ରବିତନୟର ଗ୍ରାମ**= ଯମର ପୁର; **କ୍ରନ୍ଦ**= କାନ୍ଦଣା;
**ପଞ୍ଚପ୍ରାଣ**= ପାଞ୍ଚ ପ୍ରାଣବାୟୁ;

ଛନ୍ଦ: **ମନ୍ଦାକ୍ରାନ୍ତା** (ମଭନତତ+ଗୁଗୁ)
**222  2•11 111  2•21  221 + 22**
ଏହି ଛନ୍ଦର ଜନପ୍ରିୟ ଉଦାହରଣ:
ଶାନ୍ତାକାରଂ ଭୁଜଗଶୟନଂ...
**L Kabi    202501041004**

## ତ୍ୟାଗ

ସ୍ରୋତ୍ୟା କେବେ ସଲିଳ ନ ପିଏ ସେ ଦିଏ ନୀର ଆନେ
ବିଷ୍ୱଦ୍ରୁ ସ୍ୱୀୟ ଫଳ ନ ନିଏ ତୁଷ୍ଟ ସେ ଅନ୍ନଦାନେ ।
ସେ ଆଦର୍ଶେ ଗୁଣିଜନନିଜେ ସ୍ୱାର୍ଥ କେବେ ନ ସାଧେ ।
ଯା ପାରେ ସେ ଅପରକୁ ଦିଏ ତ୍ୟାଗ ତାର ପ୍ରସାଦେ ॥

**ସ୍ରୋତ୍ୟା**= ନଦୀ; **ବିଷ୍ୱଦ୍ରୁ**= ବୃକ୍ଷ; **ସ୍ୱୀୟ**= ନିଜର; **ପ୍ରସାଦ**= ଆନନ୍ଦ;

ଛନ୍ଦ: **ମନ୍ଦାକ୍ରାନ୍ତା**- ମ୍ବୁଧିରସନଗୈ ର୍ମୋ ନତୌ ତଃ ଗଯୁଗ୍ମମ୍

**L Kabi   20250103091**

# ହିଂସା

ମୁଦିତ ରଖିବି ଏବେ ନେତ୍ର ମୋ ସର୍ବକାଳେ
ପୁରତ ପରିତ ହିଂସା ଦେଖିବା ଶକ୍ତପୀଡା ।
ସ୍ୱବଶ ମନନ ଦେଶେ ମାନ୍ୟତାପ୍ରଶ୍ନପାରେ
ନର ସହ ନର ଯୁଦ୍ଧେ ଚୌଦିଗେ ଦେଶ ସାରା ॥1

ଛନ୍ଦ: ମାଳିନୀ (ନନମୟୟ)
**L Kabi 202501030226**

# କୁଣ୍ଠା

କୁଣ୍ଠାର ଭାଷା ଭିତରେ ଶୁଭେଚ୍ଛା
ଦେଲେ ବି ସେ ଲାଗିବ ନାହିଁ କାମେ ।
ଯେବେ ନ ଲାଗେ ତୁମ ପାଳନୀୟ
ମିଥ୍ୟା ଶୁଭେଚ୍ଛା ନବବର୍ଷ ନାମେ ॥ 1

**202501021108**

ଯେତେ ସୁରାବାସ ସମଗ୍ର ଦେଶେ
ସର୍ବତ୍ର ସମ୍ବାଧ ନବୀନ ବର୍ଷେ ।
ଦେବାକୁ ବାଧା ଜନତାର ହର୍ଷେ
ଭାଷନ୍ତି ପଞ୍ଚେ ରିପୁ ଏହି ପର୍ବ ॥ 2

ସୁରାବାସ= ମନ୍ଦିର; ସମ୍ବାଧ= ଭିଡ;
ରିପୁ= ଶତ୍ରୁ;
ଛନ୍ଦ: ଇନ୍ଦ୍ରବଜ୍ରା (ତୌ ଜଗୌ ଗଃ)
**L Kabi ସ 202501030259**

# ନୀତିକଥା

ରାଜପ୍ରଭାବ
ବଢୁ ବା ଛିଡୁ ଦୌର୍ଜନ୍ୟ
ଏକ ତା ମୂଳକାରଣ ।
ଚଳନ୍ତି ଯେ ପଥେ ରାଜା
ପ୍ରଜାଏ ଯାନ୍ତି ସେଥିରେ ॥ 282
ବିଦ୍ୟାହୀନ ଥିଲେ ରାଜା
ଲଭେ ମୂର୍ଖତ୍ୱ ମାନ୍ୟତା ।
ଦୟାଧର୍ମ ହରେ ମୌର୍ଖ୍ୟ
ଅଧର୍ମରୁ ଅଧୋଗତି ॥ 283
**L. Kabi 20250101**

ରାଜପ୍ରଭାବ
ବଢୁ ବା ଛିଡୁ ଦୌର୍ଜନ୍ୟ
ଏହି ସାମାନ୍ୟ କାରଣ ।
ଯେ ମାର୍ଗେ ଚଳିବେ ରାଜା
ସେ ମାର୍ଗେ ଚଳିବେ ପ୍ରଜା ॥ 284
ବିଦ୍ୟାହୀନ ଥିଲେ ରାଜା
ଲଭେ ମୂର୍ଖତ୍ୱ ମାନ୍ୟତା ।
ଦୟାଧର୍ମ ହରେ ମୌର୍ଖ୍ୟ
ଅଧର୍ମରୁ ଅଧୋଗତି ॥ 285
**L. Kabi 20250101**

ଯୌବନ

ଯୌବନୋଦ୍ଦୀପନା ଯୋଗେ

ଦିଶେ ସର୍ବତ୍ର ସୌମ୍ୟତା ।

ତା ପ୍ରଭାବେ ପଶେ ପାପେ

ଯେ ହୁଏ ଚ୍ୟୁତସଂଯମ ॥ **286**

ଅବିବେକୀ ମନୁଷ୍ୟଙ୍କ

ବୃଦ୍ଧତ୍ୱକୁ ସହସ୍ର ଧିକ୍ ।

ବିବେକୀ ସର୍ବଥା ପାଏ

ତାରୁଣ୍ୟେ ହିଁ ପ୍ରସାଦନା ॥ **287**

ପ୍ରସାଦନା= ପୂଜା;

ଯୌବନେ ଶକ୍ତିବାହୁଲ୍ୟେ

ସାଧେ ଦୁଃସାଧ ମାନବ ।

ତାରୁଣ୍ୟେ ଯେ ବି ସତ୍କର୍ମେ

ନମେ ତା ଅଗ୍ରତେ ଶିର ॥ **288**

**L Kabi 20250102**

ସେବା

ତଟିନୀ ନ ପିଏ ନୀର

ନ ଭୁଞ୍ଜେ ଫଳ ପାଦପ ।

ନେତା ନିଃସ୍ୱାର୍ଥ ସେବାରେ

ଏହାଙ୍କ ସମ ଆଚରେ ॥ **289**

**L Kabi 202501022322**

ଅପଭ୍ରଂଶ

କାବ୍ୟଗ୍ରନ୍ଥେ ଅପଭ୍ରଂଶ

ଯା ଅସଜ୍ଜନଭାଷିତ ।

ଭାଷାରେ ନ ଥିଲେ ଶୁଦ୍ଧି

ସେ ଅପଭ୍ରଂଶ ଶାସ୍ତ୍ରରେ ॥ **290**

ଅପଭ୍ରଂଶ= ଭ୍ରଷ୍ଟାଚାର;

**L Kabi 20241218**

ଭକ୍ତ ସର୍ବେ କଣା ନେତ୍ରେ

ସଂ

ଭକ୍ତା ହି ଚକ୍ଷୁଷା କାଣାଃ

ନିର୍ମସ୍ତିଷ୍କାସ୍ତଥୈବ ଚ ।

ଲଜ୍ଜାହୀନା ହି ତେ ସର୍ବେ

ଆତ୍ମସମ୍ମାନବର୍ଜିତାଃ ॥ 291

ଓ

ଭକ୍ତନେତ୍ର ବିନା ଡୋଳା

ନାସ୍ତି ମସ୍ତିଷ୍କ ମସ୍ତକେ ।

ବ୍ୟକ୍ତିତ୍ୱେ ଦୁର୍ଲଭା ଲଜ୍ଜ

କିବା ସମ୍ମାନଚେତନା ॥ 292

ଏ ଭାବେ ଅନ୍ଧଭକ୍ତଙ୍କ

ଲକ୍ଷଣ ପ୍ରାପ୍ତ ପୁସ୍ତକେ ।

ପ୍ରଥମେ ପ୍ରଭୁ ତାହାଙ୍କ

ଡୋଳା କାଢନ୍ତି ଭକ୍ତର ॥ 293

LK 20250105

କବି ଓ ପାଠକ

କବି ଓ ପାଠକେ ବ୍ୟଗ୍ରେ

ଖୋଜୁଛନ୍ତି ପରସ୍ପରେ ।

କାହାକୁ ନ ମିଳେ ଅନ୍ୟ

ସର୍ବେ ଦିଗ୍‌ଭ୍ରଷ୍ଟ ସମ୍ପ୍ରତି ॥ 395

LK 20250105

ମୁଖଭଙ୍ଗି

ମୁଖଭଙ୍ଗିରୁ ଜାଣନ୍ତି

ମନୋଭାବକୁ ବୁଦ୍ଧିମାନ୍ ।

ଭ୍ରାମର ଭ୍ରାମରେ ଚିହ୍ନେ

ପ୍ରସୂନେ ଦେଖି ସମ୍ପଦ ॥ 296

L Kabi 20250107

ଗୁପ୍ତଭାବନା
ବଚନେ ଅଙ୍ଗବିକ୍ଷେପେ
ଭ୍ରୂଭଙ୍ଗେ ପଦଚାଳନେ
ସମ୍ୟକ୍ ଭାବେ ହୁଏ ଜ୍ଞାତ
ମନୋମଧ୍ୟସ୍ଥ ଭାବନା ॥ 297
LK 20250107

ପ୍ରେମଭାଷା
ଥିଲେ ହେଁ ପ୍ରଚୁର ଶ୍ରଦ୍ଧା
ପ୍ରିୟା ପାଶେ ପ୍ରକାଶିଲେ ।
ନିଶ୍ଚେ ଜାଣିବ ଦୌର୍ବଲ୍ୟ
ହେବ ତା ପ୍ରେମ ଲାଘବ ॥ 298
LK 20250107

ସତ୍କର୍ମ
ସଂ
କୃତମନ୍ୟେନ ଯତ୍କାର୍ଯ୍ୟଂ
ମନ୍ୟତେ ଗର୍ହିତଂ ତ୍ୱୟା ।
ତ୍ୱୟା କୃତେ କିମାଶ୍ଚର୍ଯ୍ୟଂ
ପୁଣ୍ୟତାଂ ତସ୍ୟ ଭାଷସେ ॥ 299
ଓ
ଅନ୍ୟ କେହି କଲେ ଯାହା
ବର୍ଜନୀୟ ତୁମେ କହ ।
ନିଜେ ସମ୍ପାଦି ଆଶ୍ଚର୍ଯ୍ୟ
କହ ସେ କାର୍ଯ୍ୟ ପାବନ ॥ 300
LK 20250107